୧୯୮୪

## ✳ ରେକର୍ଡ଼ ଭକ୍ତି ସଙ୍ଗୀତ ✳

### ଗୀତ ନଂ—୧



ହାତରେ ମୋ ମୁଠା ମୁଠା ଶରଧା ବାଲି
ଠାକୁରେ ଶରଧା ବାଲି
ନରେନ୍ଦ୍ରର ଜଳ ପଡ଼େ ମଥାରୁ ଝରି
ଦେହରେ ମୋ ବୋଳା ବଡ଼ ଦାଣ୍ଡର ଧୂଳି [୨ଥର]
ଚକାଡ଼ୋଳା···ଚକାଡ଼ୋଳା···
କହ ଚକାଡୋଳା ପର ହେଲି କପରି । ୨ ॥
ହାତରେ ମୋ ମୁଠା ମୁଠା ଶରଧା ବାଲି । ୨ ।
ନରେନ୍ଦ୍ରର ଜଳ ପଡ଼େ ମଥାରୁ ଝରି
ଆଖିରେ ମୁଁ ଦେଖୁଥାଏ ତୋର ମୂରତି
କାନ ମୋର ହବାକଶି ଶୁଣେ ତୋ ଗୀତ ।
ତୁଣ୍ଡେ ତୁଳସୀ ଜଳ ପାଏ ମୁଁ ନିତି
ମୁଣ୍ଡ ମୋର ଛୁଏଁ ବଡ଼ ଦାଣ୍ଡର ମାଟି । ୨ ।
ରସ ନାମ ଗାଏ ସଦା···।୨ ନାମ ତୋହରି
ପର ହେଲି କପରି, ହାତରେ ମୋ ମୁଠା ମୁଠା [ଘୋଷା]
ଘର ଜାଣେ ନୀଳାଚଳ ବଡ଼ ଦେଉଳ
ପ୍ରଭୁ ଜଣେ ତୁମ୍ଭି ଏକା ବଡ଼ ଠାକୁର (୨ଥର)
ତୋ ପାଇଁ ଭୁଲିଛି ସବୁ ଆଶା ଭରସା
ଭରସା କରିଛି ତୋର ପାଦ ଯୁଗଳ, ପ୍ରଭୁ ପାଦ ଯୁଗଳ
ଜୀବନ ଯିବ ମୋହର···ଜୀବ ଯିବ ମୋହର
ତୋ ନାମ ଧରି

ପର ହେଲା କପର, ହାତରେ ମୋ ମୁଠା...

କହ ଚକାଡୋଳା, କହ ଚକାଡୋଳା...

ଭିକାରି ବଳ

## ଗୀତ ନଂ—୨

ଷାଠିଏ ପଉଟି ଭୋଗରୁ ତୁମର
କାଢ଼ି ତ ନେଇନ ହରି
କ୍ରୁଦ୍ଧ ତେବେ କେଉଁ ଅପରାଧେ ମୋତେ,
କଲ ଦାଣ୍ଡର ଭିକାରି ॥୨॥

ଭିକାରି କରିବା ଯେବେ ତୁମ ଇଚ୍ଛା
ନାହିଁ ମୋ ମନରେ ଦୁଃଖ...
ସିଂହଦ୍ୱାର ବନ୍ଦ ଆନ ଦୁଆରକୁ
ମାଗିଯିବ ନାହିଁ ଭକ୍ତ
ଇଚ୍ଛାମୟ ଇଚ୍ଛାରେ ତୁମରି [୨ଥର]
ଦିଅ ମୋର ଥାଳ ଭରି—
କଲ ଦାଣ୍ଡର ଭିକାରି ॥୨॥

ଜାଣି ଶୁଣି ଯେବେ ଚେଇଁ ଶୋଇଥିବ
କହିବ କାହାକୁ ଆଉ
ଆଉ କାହା ପାଶେ ପତାଇବ ହାତ
ତୁମେ ପ୍ରଭୁ ଥାଉଁ ଥାଉଁ
ଖାଲି ହାତେ ପଛେ ଫେରିଯିବ ପ୍ରଭୁ [୨ଥର]
ବଡ ଦାଣ୍ଡେ ଗ୍ରୁଡ଼ ହରି
କଲ ଦାଣ୍ଡର ଭିକାରି, କଲ ଦାଣ୍ଡର ଭିକାରି [୨ଥର]

ଭିକାରି ବଳ

## ଗୀତ ନଂ— ୩

ଆହେ ଚକା ଆଖି...ଅହେ ଚକାଆଖି···ହେ ଚକାଆଖି—୧
ଶୁଖିଲାଣି କଣ୍ଠ ଡ଼ାକ ଡ଼ାକ
ସତ କହୁଛୁ କି ମିଛ ମୁଁ କହୁଛି, ସତ କହୁଛୁ କି ମିଛ ମୁଁ କହୁଛି
ବାଇଶି ପାହାଚ ତୋର ସାକ୍ଷୀ ଆହେ ଚକାଆଖି-ଆହେ ଚକାଆଖି
ହନେ ନ ଶୁଣିଲୁ ଦୁଃଖ ମୋର
ଭୁକ ନୁହଁ ନାଥ ଅନାଥର
ବଡ଼ ଆଶାକରି ଆସିଥିଲି ଧାଇଁ ବଡ଼ ଆଶାକରି ଆସି ଥିଲି ମୁଧାଇଁ
ବଡ଼ଦାଣ୍ଡ ତୋର ଅଛି ସାକ୍ଷୀ, ଆହେ ଚକାଆଖି ଆହେ ଚକାଆଖି
ତୋ ବନ୍ଧୁ ମୋରକେ ଅଛି ଭବେ—କହମୁଁ ଡାକିବି ତାକୁ ତେବେ
କମ୍ପାଇ ନଗଣ— କରୁ ବନ୍ଧୁ ବେଷ (୨ଥର)
କହ ମୋର କେଉଁ ଦୋଷ ଦେଖି-କହ ମୋର କେଉଁ ଦୋଷ ଦେଖି
ଆହେ ଚକାଆଖି—ଆହେ ଚକାଆଖି ।
ସବୁ ବନ୍ଧନ ମୁଁ କାଟିଦେଇ
ତୋ ଭୁଜ ଥାଳକୁ ଅଛି ଗୃହିଁ ।
ଦୁଃଖ ହାରି ତୋତେ ବୋଲିବେ କି ଆଉ (୨ଥର)
ଭବଜଳେ ଯେବେ ଯାଏ ଭାସି—ବଡ଼ ଦାଣ୍ଡ ତୋ ଅଛି ସାକ୍ଷୀ
ତୋ ସିଂହଦୁଆର ଅଛି ସାକ୍ଷୀ—ଆହେ ଚକାଆଖି (୩ଥର)
ଭିକାରି ବଳ

## ଗୀତ ନଂ—୪

ଜଗା କାଳିଆରେ-ଜଗା କାଳିଆରେ-ଜଗା କାଳିଆରେ—
ଜଗା କାଳିଆରେ କରୁ କେତେ ହରବର
ତୋର ନାମ ଧରି ହେଲି ଏତେ ସର—
ତୋର ନାମ ଧରି ହେଲି ଏତେ ସର

ଦୁଃଖ ନ ବୁଝିଲୁ ମୋରଯେ•••ଜଗା କାଳିଆରେ
ଜଗା କାଳିଆରେ...ଜଗା କାଳିଆରେ
ଦେଖିଲେ ତୋ ମୁଖ•••ଘୁଞ୍ଚିଯାଏ ଦୁଃଖ ଏକଥା ଶୁଣିଛୁ ମୁହିଁ
ଶ୍ରୀ ଅଙ୍ଗକୁ ତୋର ଛୁଇଁଦେଲେ ପରା ପାପ ସବୁ ଯାଏ ଧୋଇ
କପଟ ନକରି କହ ସତ କଥା...କପଟ ନକରି କହ ସତ କଥା•••
କିବା ଦୋଷ ଅଛି ମୋରରେ•••ଜଗା କାଳିଆରେ
ଜଗା କାଳିଆରେ ।

ସୁଖବେଳେ ଦିନେ ଖୋଜି ତ ନ ଥିଲି...ଦୁଃଖରେ ଶରଣ ଗଲି
ମାରି ଅବା ରଖ ଆହେ କଳାମୁଖ, ତୋତେ ମୁଁ ଭରସା କଲି !
ଆଉ ନଦାରୁଣ ନହୁଅ କାଳିଆ•••ଆଉ ନଦାରୁଣ ନହୁଅ କାଳିଆ
ଗୋଡ଼ ଧରୁଛି ତୋହରରେ•••ଜଗାକାଳିଆରେ
ଜଗା କାଳିଆରେ•••କରୁ କେତେ ହରବର
ନାମ ଧରି ହେଲି ଏତେ ସବୁ ଦୁଃଖ ନବୁଝିଲୁ ମୋରରେ
ଜଗା କାଳିଆରେ [୨ଥର]

## ଗୀତ ନଂ—୫

ଆ—କାଳିଆରେ କାଳିଆ—କାଳିଆରେ କାଳିଆ । ୨ଥର ।
ଏ ଜନମ ପରେ ଆଉ ଜନମକୁ...କରିବୁ ମୋତେ ତୋ ଜମି ହଳିଆ
ଏତିକି ଅଳି ତୋ ପାଦତଳିଆ•••କାଳିଆରେ କାଳିଆ । ୨ ଥର ।
ତୋ ଜମିରେ ଖଟାଇ ବଳ•••ଯୋଗାଇବି ସବୁ ଭୂଜଳ । ୨ଥର ।
ସେହି ଭୂଜଳରେ ହୋଇବ ନିର୍ମାଲ୍ୟ ସେହି ଭୂଜଳରେ ହୋଇବ
ନିର୍ମାଲ୍ୟ
ତାକୁ ପାଇ ଭକ୍ତ ହେବେ ବାଇଆ । ଘୋଷା ।
ସଙ୍ଗେ ହେବ ଭଜଣୀ ଭଇ ସୁଖେ ଅନ୍ନ ଭୁଞ୍ଜିବୁ ଭୁଇଁ—୨ଥର
ଦୁଃଖ ବୁଝୁଥିବୁ ଦୁଃଖୀ ଜନଙ୍କର । ୨ଥର ।

କରିଥିବୁ ମୋତେ ଗଳାମାଳିଆ କାଳିଆରେ...କାଳିରେ···
ତୋର ଏହି ସେବାରେ ମୁହିଁ...ବନ ମୋର ଦେବ ବିତାଇ
ଏତିକି ଗୁହାରି ପାଦ ତଳେ ତୋର । ୨ ଥର ।
ଭୁଲି ନ ଯିବୁରେ ଜଗନ୍ନାଥିଆ...କାଳିଆରେ···କାଳିଆ[୨ ଥର]
ଏ ଜନମ ପରେ ଆନ ଜନମକୁ କରିବୁ ମୋତେ ତୋ ଚରଣ ସିନ୍ଧୁଳିଆ
ଏତିକି ଅଳି ତୋ ପାଦ ତଳିଆ କାଳିଆରେ...କାଳିଆ ।

## ଗୀତ ନଂ—୭

ଏମିତି ଏ ବଡ଼ ଦାଣ୍ଡେ, ହାତ ପାତି ରହିଥିବ...। ୨ଥର ।
ପତିତପାବନ ପତାକାକୁ ଚୁହିଁ ତୋର ନାମ ଗାଉଥିବ ।
କାଳିଆରେ ଦୁଃଖ ମୋର ଭୁଲିଯିବ ।
ଏତିକି ମିନତି ଜଗତ ଠାକୁର···ଦୁଃଖି ବୋଲି ମୋତେ କରିବୁନି ପର
ସଞ୍ଜ ସକାଳରେ ଆରତି ବେଳରେ ଗରୁଡ଼ ପଛରେ ଥିବ ।
କାଳିଆରେ ତୋ ଶ୍ରୀମୁଖ ଦେଖୁଥିବ
ଜଗତରେ ନାହିଁ ତୋପରି ଠାକୁର···
ରଥ ଚଢ଼ିଯେବେ ହେବୁ ତୁ ବାହାର ।
ତୋ ରଥ ଦଉଡି ଅଣ୍ଟାରେ ମୁଁ ଭିଡ଼ି ଆନନ୍ଦରେ ଟାଣୁଥିବ ।
କାଳିଆରେ ଜୀବନ ଧନ୍ୟ କରିବ ଜୀବନ ଧନ୍ୟ କରିବ ।
ଯେତେ ଇଚ୍ଛା ଦୁଃଖ ଦେଏ ପଛେ ମୋତେ···
ମାଗିବିନି କିଛି ହନେ ହେଲେ ତୋତେ
ପାରିବିନି ଯାଇ ତୋତେ ଛାଡ଼ି ମୁହିଁ ଶ୍ରୀକ୍ଷେତ୍ରରେ ରହିଥିବ
କାଳିଆରେ ତୋ ସେବାରେ ଖଟୁଥିବ ।
ଏମିତି ଏବଡ ଦାଣ୍ଡେ ହାତପାତି ରହିଥିବ ।
ପତିତ ପାବନ ପତାକାକୁ ଚୁହିଁ···ତୋର ନାମ ଗାଉଥିବ ।
କାଳିଆରେ ତୋ ସେବାରେ ଖଟୁଥିବ ।
କାଳିଆରେ ତୋ ସେବାରେ ଖଟୁଥିବ ।

## ଗୀତ ନଂ – ୭

ଦାମ୍ପିଆ ନଡ଼ିଆ ସିନା ତୋତେ ବଢ଼ିଆ
ହେଲେ ତୋ ଅଭଡ଼ା ଅନ୍ନ ମୋତେ ବଢ଼ିଆ (୨ ଥର )
କାଳିଆରେ ମୋତେ ବଢ଼ିଆ ।
ଘଣ୍ଟ ଘଣ୍ଟା ଖୋଳ ତାଳ, ତୋତେ ସିନା ଲାଗେ ଭଲ ॥ ଧୋଷା ॥
ମୋତେ ଭଲ ଲାଗେ···(୨ଥର) ପଣ୍ଡା ବେତ ବାଡ଼ିଆ ।
ହେଲେ ତୋ ଅଭଡ଼ା ଅନ୍ନ ମୋତେ ବଢ଼ିଆ । କାଳିଆରେ ମୋ···
ହାତେ ତୋର ସୁଦର୍ଶନ...ହାତେ ତୋର ସୁଦର୍ଶନ...
ଦଶ ଜେଠେ ଶୋଭବନ···ମୋ ହାତେ ଖଞ୍ଜଣୀ ଶୋଭ (୨ ଥର)
କାଳିଆରେ ··ମୋ ହାତେ ଖଞ୍ଜଣୀ ଶୋଭ ମୋତେ ବଢ଼ିଆ ।
ହେଲେ ତୋ ଅଭଡ଼ା ଅନ୍ନ ମୋତେ ବଢ଼ିଆ
କାଳିଆରେ ମୋତେ ବଢ଼ିଆ···।
ରାଧିକା ମୋହନ ବେଶ ତୋତେ ଲାଗଇ ସରସ...୨ଥର)
ଲୋ ଦୁଆରେ ଯୋଗୀ ବେଶ ମୋ ଦୁଆରେ ଯୋଗୀ ବେଶ
ତ ବଢ଼ିଆ···ହେଲେ ତୋ ଅଭଡ଼ା ଅନ୍ନ ମୋତେ ବଢ଼ିଆ
ଆ ନଡ଼ିଆ ସିନା ତୋତେ ବଢ଼ିଆ
ହେଲେ ତୋ ଅଭଡ଼ା ଅନ୍ନ ମୋତେ ବଢ଼ିଆ [ ୨ଥର ]

## ଗୀତ ନଂ—୮

ଜଗନ୍ନାଥ କଲେ ଯା ଅନାଥରେ···ଆଉକେ ହରବ ଦୁଃଖ[୨ଥର]
ଜଗତରେ ଚର ବାଜୁଛି ନାଗର...ଦୁଃଖହାରି ଚକ୍ରମୁଖ
ସାହା ଚଉଦାହା ନୋହିଲେ କ ଯାହା...ସାହା ଚଉଦାହା
ନୋହିଲେ କ ଯାହା
ଦେଖି ମୋ ଜୀବନ ବ୍ୟଥା
ଚନ୍ଦ୍ରଭଗେ ପୁଣି ପିବଟି ପ୍ରସଙ୍ଗ
ଲୁଚବ କାହିଁରେ କଥା

ଜଗନ୍ନାଥ କଲେ ଯା ଅନାଥରେ···ଆଜ୍ଞ କେ ହରବ ଦୁଃଖ
ଗଜପତି ବୋଲେ, ପ୍ରଭୁ ଯେବେ ଭକ୍ତ (୨ଥର)
ନ ଶୁଣିବେ ମୋର ଗୁହାରି ଯୋଡ଼ୁ ମୋ ନିଶ୍ବାସ···
ଯୋଡ଼ୁ ମୋ ନିଶ୍ବାସ
ବଡ଼ ଦୟାବନ୍ତ ହରି···ଜଗନ୍ନାଥ କଲେ ଯାହା ଅନାଥରେ...
ଜଗତରେ ପରି ବାଜୁଛୁ ନାଗରି···ଦୁଃଖହାରି ଚନ୍ଦ୍ରମୁଖ ।ଘୋଷା।

## ଗୀତ ନଂ—୪

ଜୟ ଜଗନ୍ନାଥ ସ୍ୱାମୀ···ହୁଁ ନୟନ ପଥଗାମୀ ହୁଁ···ଭବ ତୁମେ
ହୁଁ...ନୟନ ପଥଗାମୀ ଭବ ତୁମେ ହୁଁ···
ଜୟ ଜଗନ୍ନାଥ ସ୍ୱାମୀ...ଜୟ ଜଗନ୍ନାଥ ସ୍ୱାମୀ [୨ଥର]
ତୁମେ ନିରଞ୍ଜନ ଅଖିଳ ମୋହନ ହେ ପ୍ରଭୁ ସାରଙ୍ଗ ପାଣି ।
ତୁମେ ଚିରନ୍ତନ···ସତ୍ୟ ସନାତନ...ତୁମେ ହେ। ଅନ୍ତର୍ଯାମୀ
ଜୟ ଜଗନ୍ନାଥ ସ୍ୱାମୀ ଜୟ ଜଗନ୍ନାଥ ସ୍ୱାମୀ-ଜୟ ଜଗନ୍ନାଥ ସ୍ୱାମୀ
ତୁମେ ବ୍ରହ୍ମା, ବିଷ୍ଣୁ ତୁମେ ମହେଶ୍ୱର—ତୁମେ ଦଇତାରି ଗତି
ଅଗତିର···।୨ଥର।
ତୁମେ ସର୍ବବ୍ୟାପୀ ତୁମେ•ନିରାକାର·।୨ଥର।
ତୁମେ ମୋ ଜୀବନ ସ୍ୱାମୀ-ଜୟ ଜଗନ୍ନାଥ ସ୍ୱାମୀ-ଜୟ ଜଗନ୍ନାଥସ୍ୱାମୀ
ତୁମେ ନାରାୟଣ ତୁମେ ପରମବ୍ରହ୍ମ ତୁମେ ସୁଦର୍ଶନ
ଶ୍ରୀ ମଧୁସୂଦନ ଆ·· [୨ଥର]
ଆହେ ଘନଶ୍ୟାମ ଘେନ ମୋ ପ୍ରଣାମ ନମୋ ନୋମ ଅନ୍ତର୍ଯାମୀ
ଜୟ ଜଗନ୍ନାଥ ସ୍ୱାମୀ-ଜୟ ଜଗନ୍ନାଥ ସ୍ୱାମୀ-ଜୟ ଜଗନ୍ନାଥସ୍ୱାମୀ

## ଗୀତ ନଂ—୧୦

କଣ୍ଠ ଶିଳ୍ପୀ—ଶ୍ରୀ ଅକ୍ଷୟ ମହାନ୍ତି

ବଡ଼ ଭାଇ ପଗ୍ରରନ୍ତ···କାଳିଆ କହରେ [୨ଥର]
ଏତେ ଗାଳି ଶୁଣି ନିତ···କେମନ୍ତ ସହୁଛରେ ।ଘୋଷା।
ବଡ଼ ଭାଇ ପଗ୍ରରନ୍ତ କନ୍ତୁ ନ ଜାଣିଲା ପର ଭାଇକୁ ଗୃହିଁରେ
କପଟି ସେ ଚକାଡ଼ୋଳା ବସିଅଛୁ ଥାଇରେ । ଘୋଷା ।
ସାଁତା ପଣ୍ଡା ଭାରିଯା ତୋ ଜଭକୁ କାଟିଲା
ଶ୍ରୀବତ୍ସ ବାହ୍ମଣ ତୋତେ ଗୋଇଠା ମାଇଲା [ ୨ଥର ]
ଦଇତା ହାତନ୍ତ କେତେ ପାହାର ଖାଇରେ
କାଳସର୍ପ ତୋଳି ଗାଳି [୨ଥର] କାହିଁକି ଶୁଣୁଛରେ ।ଘୋଷା।
ମୁଁ ତୋତେ ଜାଣୁନ ବୁଝି ହୋଇ ତୋର ଭାଇ···
ଏମିନ୍ତ କପଟି ତୁମ୍ଭେ କାଳିଆରେ କାହିଁ (୨ଥର)
ଯାହା ପଗ୍ରରଲେ ତୋତେ ଦେଉଛୁ ହସିରେ···
ଏତେ ମାଉଁଶିଆ ବୁଦ୍ଧି (୨ ଥର) କାହିଁକି କରୁଛରେ
ବଡ଼ଭାଇ ପଗ୍ରରନ୍ତ କନ୍ତୁ ନ ଜାଣିଲା ପର ଭାଇକୁ ଗୃହିଁରେ
କପଟି ସେ ଚକାଡ଼ୋଳା ବସିଅଛୁ ଥାଇରେ । ଘୋଷା । ୨ଥର ।

## ଗୀତ ନଂ—୧୧

କଣ୍ଠ – ଶତ୍ରୁ ଜେନା

ତୋପାଏ ଲୁହରେ ଭସାଇ ଦେବ ତୋ ଦେଉଳ
ଖାଇସାରି ଦେବ ଷାଠିଏ ପଉଟି ଗୁଆଳ ।
ତେଣୁ ଜଗନ୍ନାଥ [ ୨ ଥର ] ଶୁଣ ସଅଳ
ଜଗନ୍ନାଥ ଶୁଣ ସଅଳ, ଜଗନ୍ନାଥ ଶୁଣ ସଅଳ । ଘୋଷା ।
ଦୁଃଖ ହରିବାର ଦେଖା ନାହିଁ
ପୂଜା ପାଇବାକୁ ଅଛୁ ଗୃହିଁ । ୨ ଥର ।

ଢ଼ଣ୍ଢାର କରିବା ନା ନାହିଁ, ସିଂହ ବୋଲି ମାନେ କାହିଁ ।
ତୁଟାଏ ଶୁଆଇ ଦେଦେ ତୋ ଚନ୍ଦନ ବନ୍ଧନ
ମୋ ଦୁଃଖ ତାପରେ ଚଳ ହୋଇ ଦେବୁ ତୁହି ମିଳନ ।
ତେଣୁ ଜଗନ୍ନାଥ ଶୁଣ ସଅଳ [ ୨ଥର]
ବୁଝାଇଲୁ ନାହିଁ ପାପ ପୁଣ୍ୟ କରିଲୁ ବ ନାହିଁ ମାନ୍ୟଗଣ୍ୟ [୨ଥର]
କାହାକୁ ମିଳେନା ଧନଜନ··ମୋହର ବେଳକୁ ମିଛ ସପନ
ବଡାସ ଝଡ଼ାଇ ଦେବ ତେ ଧଣ୍ଡମାଳ
କରିବ କରିବ ବିଚାର କହୁଛି ହୁଅ ପଛେ ତୁହି ମହାକାଳ
ତେଣୁ ଜଗନ୍ନାଥ [୨ ଥର] ଶୁଣ ସଅଳ । ୨ ଥର ।

## ଗୀତ ନଂ—୧୨

କଣ୍ଠ—ଶ୍ରୀ ଅକ୍ଷୟ ମହାନ୍ତି

ଯାଏ ରଥ ଗଡ଼ ଗଡରେ [୨ଥର]
କାଳିଆ ଆସୁଛି ଶ୍ରୀନନ୍ଦିଘୋଷରେ ବାହୁକ ହଲାଏ ବାଡ଼ିକେ ଝିଙ୍ଗ
ଏ ଭକତେ···ଓ ମଣିଷ ପିଠିରେ କଣା
ନନ୍ଦିଘୋଷ ରଥ ବାଜେଣି ବଳା, ବଜେ କଲେ ଚକାଡ଼ୋଳା
ମାଉସୀ ଘରକୁ ଯାଉଛି କାଳିଆ,
ଅଣ୍ଟେ ଦୋହଲାଇ ନାଚନ୍ତି ଘଣ୍ଟିଆ
ଆଗରେ ଗଲେଣି ସୁଭଦ୍ରା ବଡ଼ଭାଇ, ମଝିରେ ଗୁଳନ୍ତି ହଳଦିଆ ମୁହିଁ
ପଛରେ କାଳିଆ ଦାଣ୍ଡ ମଝିରେ [୨ଥର]
ଭିଡ଼ ଠେଲି ଆସେ ମାଡରେ ଯାଏ ରଥ ଗଡ଼ି ଗଡ ଗଡ଼ରେ
ଓ ଭକତେ ଓ ନଣ୍ଡରେ କୋଟିଆ ଗାତ ହୁଁ
କାଳିଆ କହୁଛି ନଇଁ ଧରିବ ଦୋହଲ ବପୁସୀ ହାତ···
ଆଷାଢ଼ ମାସରେ ଏହି ରଥ ଜାତରା
ତିନି ରଥ ବଡ଼ ଦାଣ୍ଡେ ହୁଏ ଓଟରା
ଦଇତା ପତିଏ ଦେଉଳରୁ ନେଇ ଠାକୁରଙ୍କୁ ରଥରେ ଆଣିବେ ବୁଲାଇ
ସଭିଙ୍କୁ ଆଦରେ କୁଣ୍ଡାଇ କୁଣ୍ଡାଇ, କାଳିଆ ବାହୁକୁ ମେଲେଇ

ଏକୁଟିଆ ଚେତଣେ ବଡ ଦେଉଳରେ (୨ଥର)
ଲକ୍ଷ୍ମୀ ସାଅନ୍ତାଣୀ ଚୁଡରେ ଯାଏ ରଥ ଗଡ ଗଡରେ । ଘୋଷା ।

## ଗୀତ—୧୩

କଣ୍ଠ—ଚିତ୍ତ ଜେନା
ଆଖିରେ ଶରଧା ବାଲିରେ ଶରଧା, କେତେ ଶରଧା ତ
ଠାକୁର ମୁଁ ଏକା
ସରଗ ଠାକୁର ଦରକାର ନୁହେଁ ଆସିଛି ଦେଖିବ ବୁଲି
ସବୁଗାଥା (୨ଥର)
ଗୃହାଣୀ ଜେଜେ ଝୁଲସି ଯିବକ, ଦେହ ସବୁ ବେଶି ବଶସି ଯିବକ
ଅମାପ କରୁଣା ପରସିବୁ ବାଲି (୨ଥର)
ତୋ ଚରଣେ ପ୍ରବେଶି ତଣ୍ଡେ ପଡ଼ି ଆଉ (୨ଥର)
ଆସିଛି ନ ମାନ ବାଟ ବଙ୍କା ସିଧା [ ଥର]
ଭେଟିବାର ଥିଲି ତାକୁ କେଉଁକାଳୁ ବନ କଟିଗଲା ଖେଳ ଖେଳ
ତୋବାଲିକୁ ସିନା ମରମ ପସରା ରଖି ମନରଖ ତା ଚକା ନୟନ
ହୋଇଗଲା ଢେଉ ସାଗର ପ୍ରହରୀ [୨ଥର]
ଆସିଥିଲି ମାନ· ବାଡ଼ ବଙ୍କା ସିଧା ବାଟ ବଙ୍କା ସିଧା
ଆଖିରେ ଶରଧାବାଲିରେ ଶରଧା କେତେ ଶରଧାର
ଠାକୁର ମୁଁ ଏକା [୨ଥର]

## ଗୀତ—୧୪

ଚକାଡ଼ୋଳା...ଚକାଡୋଳା···ପହଣ୍ଡି ବଜେ ବେଳ ହେଲାଣି[ ୨ଥର
ନକର ଆଉ ବେଳ ଆସହେ ଚକାଡ଼ୋଳା (୨ଥର)
ଅଣସର ଘରୁ ନେଇ ମେଲଣି (ଘୋଷା)
ଜଗତର ନାଥ ବୋଲି ଜାତ ଅଜାତ ଭୁଲି
ଭକତ ମେଳେ ପ୍ରଭୁ ଅଛ ହେ ଝୁଲି ଝୁଲି '୨ଥର)
ମାଉସୀ ଡେଣେ ଡ଼ାକ ଦେଲେଣି (୩ଥର ପହଣ୍ଡି ବଜେ···

## ଭଜନ—୧୫

କଣ୍ଠ—ସିକନ୍ଦର ଆଲମ
ବାଇଶି ପାହାଚରେ ଅଟକି ଥରେ ଥରେ
ଭାଇ ଭଉଣୀଙ୍କ ସଙ୍ଗେ ଆସ ହେ ବଡ଼ ଦାଣ୍ଡେ (୨ଥର)
ଗୁଣ୍ଡିଚ୍ଚା ଘରେ ହେବ ରହଣି (୩ଥର) ପହଣ୍ଡି···
ନ କର ଆଉ ହେଳା ଆସ ହେ ଚକାଡ଼ୋଳା ଅଣସର...
ବଡ଼ ଦାଣ୍ଡେ ଝୁଲି ଝୁଲି ଆସେ କାଳିଆ ହାତି (୨ଥର)
ଚନ୍ଦ୍ର ଜହ୍ନଆପା (୨ଥର) କୋଠମୁହ ଖଣ୍ଡେ ହୁଁ।
ହା...ଆରେ ଚକାମନ ଧବଳ ମୂର୍ତ୍ତି ବଡ଼ ଦାଣ୍ଡେ ଝୁଲ। ଘୋଷା।
ବଡ଼ ଦେଉଳର ରତ୍ନ ସିଂହାସନ ରକ୍ତପଦ୍ମ ଗୁଣ୍ଡ ବାହାର ହେଲେ
ଘଣ୍ଟ ମାରୁଦଳ କାହାଳି ବାଜଣାରେ, ଦେଖରେ: କାଳିଆ
ଆସୁଛି ହସି
ବଡ଼ ଦାଣ୍ଡ ଧୂଳି (୨ଥର) ଖେଳ ଖେଳି ଖେଳି···ହୁଁ
ଡ଼ାହାଣେ ବାଏଁରେ ଡ଼ଳ ପଡ଼ନ୍ତି ବଡ଼ ଦାଣ୍ଡେ (ଘୋଷ)
ମହିମା ମହିମା ଗୁହାରି ଶୁଣିମା ଡ଼ାକେ ଫୁଲ ଫୁଲ ହସେ କାଳିଆ
ଥଣ୍ଡା ଦୋହଲାଇ ଝୁମ୍ପା ଚମକାଇ ଚଢ଼ନ୍ତି ଆସୁଛି ବନମାଳିଆ
ବଡ଼ ଭୋଗ ଏବେ ଅରୁଚି ଲାଗିଲା (୨ଥର)
କହୁଛିଆ ମାଉଁ ମନ ବଳାନ୍ତି ବଡ଼ ଦାଣ୍ଡେ...

## ଗୀତ—୧୬

ନୀଳାଚଳେ ବସି କରୁଅଛୁ ଲୀଳା
ଦାରୁ ଦେହେ ଅଛୁ ପ୍ରଭୁ ଷୋଳ କଳା।
ସେ କାଳର ପ୍ରଭୁ ନାହିଁ ଆଦ୍ୟଅନ୍ତ
ବୁଝିପାରେ ନାହିଁ ଯାହା ସାଧୁ ସନ୍ଥ ॥ ଘୋଷା।
ମୀନ ରୂପେ ନେଇ ପ୍ରଳୟ ଜଳରୁ ବେଦ ଉଦ୍ଧାରିଛ ଯାହିଁ
କଚ୍ଛପ ରୂପରେ ମନ୍ଦର ଗିରିର ଭାର ନେଇଥିଲ ବୋହି। ଘୋଷା।

ଶୁକର ରୂପରେ ସାଗର ଗରଭୁ ଧରଣୀକୁ ଟେକିଥିଲ
ନରହରି ରୂପେ ହିରଣ୍ୟ କଶ୍ୟପୁ ଚନ୍ଦ୍ରକୁ ବିଦାରି ଥିଲ ॥ ଘୋଷା ॥
ବାମନ ରୂପରେ ପାଦ ତଳେ ପାତାଳକୁ ଗୁଞ୍ଜି ଦେଲ
ଭୃଗୁପତି ରୂପେ ସୀତା ଅପମାନ କ୍ଷତ୍ରିୟ ନିଧନ କଲ ॥ ଘୋଷା ॥
ରାମ ଅବତାରେ ଲଙ୍କା ଗଡ଼େ ଯାଇ ରାବଣକୁ ମାରିଥିଲ
ହଳଧର ରୂପେ ହଳ ମୁନେ ପ୍ରଭୁ ଯମୁନା ବୁହାଇ ଥିଲ ॥ ଘୋଷା ॥
ବଉଦ୍ଧ ରୂପରେ ମଉନ ରୂପରେ ବସିଅଛ ବସିଥିବ
କଳକୀ ରୂପରେ କାଳକାଳ ନେଇ ମ୍ଲେଚ୍ଛ ସଂହାରି ଥିବ ଘୋଷା ॥

## ଗୀତ ନଂ—୧୭

କଣ୍ଠ—ସିକନ୍ଦର ଆଲମ

ତୋ ଚକାଡ଼ୋଳାକୁ ଗୁହାଁ ରହିଥିବି
ମୋ ଆଖିରୁ ଲୁହ ସରିବାଯାଏ [୨ଥର]
ତୋ ନାମ ଧରି ଡକା ପାରିଥିବି [୨ଥର]
ରତ୍ନ ସିଂହାସନ ଧରିବା ଯାଏ ॥ଘୋଷା॥
ତୋ ଆଗେ ସେ ଯାଏ ହାତ ପାତିଥିବି
ଭକ ଝୁଲି ମୋର ଭରିବା ଯାଏ ।
ବାଇଶି ପାହାଚେ ପଡ଼ି ରହିଥିବି ତୋ ଚରଣ ରେଣୁ ପାଇବାଯାଏ
ବଡ଼ ଦାଣ୍ଡେ ରଥ ଯାତ ଦେଖୁଥିବି ଯାଇ [୨ଥର]
ଜନମୁ ଉଦ୍ଧାର ଲଭିବା ଯାଏ ।
ତୋ ମହାପ୍ରସାଦ ମାଗି ଖାଉଥିବି
ଛପନ ଭୋଗ ତୋ ସରିବା ଯାଏ
ଶରଧା ବାଲିରେ ଗଡ଼ୁଥିବି ଯାଇ
ତୋ ଶରଧା ଟିକେ ମିଳିବା ଯାଏ
ଶ୍ରୀ କ୍ଷେତ୍ରରେ ତୋର ବସି ରହିଥିବି (୨ଥର)
ଯାଆ ଏବେ ବୋଲି କହିବା ଯାଏ
ତୋ ଚକାଡ଼ୋଳାକୁ ଗୁହାଁ ରହିବି···

## ଗୀତ ନଂ—୧୮

କଣ୍ଠ—ଅକ୍ଷୟ ମହାନ୍ତି

ଭକତ ହେଲଅ। ଭକତ ତୁ ଆଗ ସେବକ ତୁମ୍ଭର ଥାଇ (୨ଥର)
ଗୁହିଁାଣୀ ମଣ୍ଡପେ ଗୁହିଁଛନ୍ତି ଲକ୍ଷ୍ମୀ (୨ଥର) ଘରକୁ ଫେରିବାହେଉ
ନଅଦିନ ଯାଇ ବାହାରେ ରହିଲ·· ନଅଯୁଗ ବିତିଗଲା
ଶ୍ରୀମନ୍ଦିର କେଡ଼େ ଶିରିହୀନ ହେଲା ସତେ କି ନଅଙ୍କ ଦୋଟିଲା
କଳପ ବଟରୁ ପତର ଶୁଖିଲା··· ଆନନ୍ଦ ବଜାର ଖାଲି
ରସତଳେ ଆଉ ବହୁନ ମଳୟ...ପାଠ ଅଗଣାରେ ବୁଡ
ଏ କଥାରେ ଦେବ ପରତେ ନ ହେଉଛି (୨ଥର)
ଆଖିରେ ଦେଖିବା ହେଉ
ଭକତ ହେଲଅ। ଭକତ ତୁ ଆଗ ସେବକ ତୁମର ଥାଉ
ଶୁଆ ଶାରି ପାରି ବ୍ରାହ୍ମଣ ସେନାଙ୍କ କୋଳାହଳ କାହିଁ
ବେଷଘର ଚୁଲି ଭାଙ୍ଗି ପଡ଼ିଅଛି ସେଜ ନଳା ସେଜ ନାହିଁ
ଶ୍ରୀପୁ ଠାକୁରାଣୀ ଝାଉଁଳି ଗଲେଣି ତୁମ ପଡ ଅନ୍ନ ଖାଇ
ଦେବ ଦେବୀଗଣ ଅଛନ୍ତି ମଉନ ମୁହଁରେ ହରଷ ନାହିଁ
ବିଳମ୍ବ ନ କର ଆହେ ନୀଳଗିରି (୨ଥର) ଲକ୍ଷ୍ମୀଙ୍କୁ ଭେଟିବାହେଉ
ଭକତ ହେଲଅ। ଭକତ ତୁ ଆଗ—

## ଗୀତ ନଂ—୧୯

ଚକା ଚକାକା ଚକା ଚକାକା ଦେଖ ଆସନ୍ତି ଜଗନ୍ନାଥ
ବଡ଼ ଦାଣ୍ଡରେ ଜୟ (୨ଥର) ବାହୁଡ଼ା ତିନରଥ ।ଘୋଷା।
ନବଦିନ ପରେ ପୁଣି ବଡ ଦେଉଳକୁ···
ଫେରିଛନ୍ତି ଧରି ସାଥେ ଭାଇ ଭଉଣୀକୁ (୨ଥର)
ବେଷଶାଳା ଭାଙ୍ଗି ଦେଇଗଲେ ପୋଡ଼ପିଠା ଖାଇ (୨ଥର)
ସରିଲା ଘୋଷଯାତ୍ର । ୨ । ଫେରିଲେ ଜଗନ୍ନାଥ ଚକା ଚକା—
ବାହୁଡ଼ା ରଥରେ ବସି ସୁନାବେଶ ହେବେ । ୨ଥର ।

ବାମନ ରୂପରେ ପ୍ରଭୁ ଦରଶନ ଦେବେ
ବରଷକେ ଥରେ ସେ ଯେ ରଥ ଗୁଣ୍ଡିଚ୍ଚ ବଜେ (୨ଥର)
ଓଡ଼ିଶାର ନାଥ ନୁହେଁ । ଥର ॥ ସେତ ଜଗତନାଥ
ଡ଼ଳ ଡଳକା ଦେଖ ଆସନ୍ତୁ ଜଗନ୍ନାଥ (୨ଥର)
ବଡ ଦାଣ୍ଡରେ ଉଭା ।୨ଥର। ବାହୁଡ଼ା ହେନରଥ । ବଡ଼ଦାଣ୍ଡରେ...

## ଗୀତ—୨୦

କଣ୍ଠ—ସିକନ୍ଦର ଆଲମ

ଆଖିମାନ ଦେଇ କାଳିଆ ଡ଼ାକୁଛି
ଜାଡରେ ଗୁମାସ୍ତା ହାତରେ ଜାଡରେ ଗୁମାସ୍ତା ହାତେ
ପାଦ ନାହିଁ ବୋଲି (୨ଥର) ଯାଇ ପାରୁନାହିଁ
ଆହା ତୁ ଦେଖିବୁ ମୋତେ ।
ଡାହାଣ ମେଲିରେ ଲୋକ ହାଉଯାଉ
ଛୁଟିଥିବେ ଯାହା ସୁଅ
କେହବା ଦେବ ମୁଁ ମୋତେ ଟିକେ ପଣ୍ଡା, କାଳିଆ ପାଖକୁ ନିଅ ।
ଆଲଟ ଚାମର ଆରଖ ଉଭାରେ ତାକୁ ମୁଁ ଦେଖିବ ସତେ
ଅଡ଼େଇ ଶଗଡ଼ଫୁଲ ପିନ୍ଧିଥିବ ଚନ୍ଦନ ଲାଗିଚ ହୋଇ
ବେଶରବ ଗୋଡ଼ ଗୁଲି ଅଗାଣାରେ ।୨ଥର।
ଦୁବ ପଡ଼ିଥିବ ଯାଇ ଲାଗି କରୁଥିବେ ॥୨ଥର
ସତେକ ମଣେଇ ପାଟ ମହାଦେଈ ହାତେ ।୨ ଥର
ଚନ୍ଦନ ଅର୍ଗଳ ରତ୍ନ ବେଖ ଚଳେ ପାଦ ନୂପୁର ନାହିଁ ।
ଦେବ ଦାସୀ ଡ଼ଳ ଡ଼ଳକା ସେ ପିବ ଶ୍ରୀକ୍ଷେତ୍ର ଗୋବନ୍ଦ ଯାଇ
ସବୁ ବଡ଼ବୋଲି ବଡ଼ ଦଅଙ୍କର ବଡେଇ ଦେଖିବ କେତେ ।
ଆଖିମାନ ଦେଇ କାଳିଆ ଡ଼ାକୁଛି...(ଘୋଷା

## ଗୀତ – ୨୧

କଣ୍ଠ—ଚିତ୍ତ ଜେନା

ତୋ ଡୋର ଲଗିଲା କାଳିଆରେ ମୋତେ
ତୋ ଡୋର ଲଗିଲା ମୋତେ ।
ଜଗା ମୋହନରେ କାଳିଆ ସୁନାରେ, ସତେକ ଦେଖିବୁ ତୋତେ
ରତ୍ନ ସିଂହା ସନେ ପଦ୍ମ ମାଳ ପିନ୍ଧି
ଲଗେ ଫୁଲଗୁଣା ଚାଇ
ଚକା ଆଖି ମେଲି ଶ୍ରୀବହି ବସିଥିବୁ
ଦେବ ଚନ୍ଦୁଆର ନେଇ
ଭକତ ନୟନେ ଖୋଜୁଅଛୁ ପଦ,ଗୃହଦୁଆର ତୋ ସତେ (୨ଥର)
ବାର ମାସେ ତେର ଯାତ୍ରା ଦେଖୁଥିବ
ପଞ୍ଚ ତୀର୍ଥେ ମାଇ ବୁଡ଼ ।
ମନ୍ଦିର ବେଢାରେ ପଡ଼ି ରହିଥିବ···ଖାଇ ତୋର ଭେଟ ମାଣ୍ଡ
ଆନନ୍ଦ ବଜାରେ କୈବଲ୍ୟ ସାଉଁଟି ମୋ ଦୁଇ ହାତେ ।
ତୋ ଡୋର ଲଗିଲା କାଳିଆରେ ମୋତେ
ତୋ ଡୋର ଲଗିଲା ମୋତେ । ଘୋଷା ॥

## ଗୀତ – ୨୨

କପଟି ବୋଲିବ ବନ୍ଧୁ ବୋଲି କି...ବନ୍ଧୁ ବୋଲି କି । ଘୋଷା ।
ଡାକ ୨ ପ୍ରଭୁ ଅନାଥ ଗଲାଣି···ଆଡ଼େ ହେଲ ଶ୍ରୀବହି ନେଲକ ୨ଥର
ଲୁଗା କିଏ ଧି ନାମ ଉଚ୍ଚରିଲ ମୁଖେ...ଭଲେ ହେଲେ କୃପା କଲ କି
ଗାଁ ବନ୍ଧୁ ବୋଲି ହୁରି ପକାଇଲ...ପାଖେ ଆସି ଠିଆ ହେଲ କି
। ଘୋଷା ॥
ବପଦ କାରଣ କଲେ ଅକଲ୍ୟାଣ...ଦୁଃଖ କାହିଁ ହରି ନେଲ କି ?
ଦୟାମୟ ବୋଲି ନାମ ସୁମରିଲି···ମୋ କଷଣ ଘୁଞ୍ଚାଇଲ କି ?
ଦେଖି ମୋ ଦୁଃଖକୁ ଆହା ମୋ ଠାକୁର...କେବେ ହେଲେ ଉଚ୍ଚାରିଲ କି?
କପଟି ବୋଲିବ ବନ୍ଧୁ ବୋଲି···ବନ୍ଧୁ ବୋଲି କି··· । ଘୋଷା ॥

## ଗୀତ ନଂ—୨୩

ଦେଖ ଉଡ଼ୁଛି ବାନା ନୀଳଚକ୍ରକୁ ଅନା,
ଏ ଦେଖ ଉଡ଼ୁଛି ବାନା ନୀଳଚକ୍ରକୁ ଅନା (ଘୋଷା)
ଉଡ଼େ ଫର ଫର ଧ୍ୱନି-୨
ସଭିଙ୍କର ମନ ମୋହି-୨
ତାରିବାକୁ ପାପୀଙ୍କର ପାପକୁ ପିନା—୧
ବଡ଼ଦାଣ୍ଡ ବଡ଼ରଥ ବଡ଼ ଦେଉଳ
ବଡ଼ ସିଂହାସନେ ବସି ବଡ଼ ଠାକୁର—୨
ବଡ଼ରାଜା ଓଡ଼ିଶାର ବଡ଼ ସେବକ ତାହାର—୨
ତିନି ଭୁବନେ ତା'ର ନାହିଁ ତୁଳନା—(୨)
ଚକା ଡୋଳା ଆଖିରେ ସେ ସବୁ ଦେଖଇ
ସବୁ ଘଟେ ସବୁ ଗଢ଼େ ଜଗତ ସାଇଁ—୨
ପର ନାହିଁ କେହି ତା'ର ସବୁ ତା'ର ଆପଣା-୨
ଦେଖି ଦେଖୁଥିଲେ ତାକୁ ମନ ବୁଝେନା...୩
ଦେଖ ଉଡ଼ୁଛି.........

ରଚନା ବ ବ ପଣ୍ଡା

## ଭଜନା—୨୪

ମନରେ......ଓ ଓ...ଓ
ମାୟାଜାଲେ ପଡ଼ି ଆଉ ମିଛେ ଭୁଲନା
ମାୟାଜାଲେ...... ॥ ଘୋଷା ॥
ଧନଜନ ଅରଜକୁ କହୁ କିଆଁ ମୋର ମୋର—୨
ଆଖି ବୁଜିଦେବୁ ଯେବେ ହୋଇ ଯିବେ ସବୁ ପର—୨

ଆସିଅଛୁ ଏକା ଏକା ଫେରଯିବୁ ଏକା ଏକା—୨
ଲୋଭକର ଲଭ୍‌ନାହିଁ ପ୍ରଭୁନାମ ମନେ ପକା—୨
ମନରେ······ଓ···ଓ...ଓ...
ମାୟାଜାଲେ ପଡ଼·········

## ଭଜନ—୨୫

ଭଲ କାଳିଆ କରିଲା ମନ୍ତର
ଏ ଭଲ କାଳିଆ କରିଲା ମନ୍ତର ॥ ଘୋଷା ॥
ଲଗାଇଣ ଡୋର ନେଲା ମୋତେ ଘୁରି — ୨
ଆଉ ମୋ ମନ ବଳୁନ ଯିବାକୁ ଘର ।
ଘୁଞ୍ଚ ସିଂହ ଦୁଆର ।···୧ ।

ଦେଖିଲା ଯେମିତ ସେ ଚକା ଆଖି
ମନ ମୋର ତା'ରେ ରହିଲା ଲାଖି
ମନଖୋଲା କଥା ସବୁ କହିଲି
ତା' ଚରଣ ରେଣୁ ମୁଣ୍ଡେ ମାଖିଲି,

ଦେଖି ମୁଁ ତା ଛବି ହେଲି ମହାଖୁସି
ଆଖିରୁ ଝରିଲା ଲୁହର ଧାର
ଘୁଞ୍ଚ ସିଂହ ଦୁଆର···୨ ।

ଆନନ୍ଦବଜାରେ ପଶିଲି ଯାଇ
କଇବଲ୍ୟ ଜଗା ଦେଲା ଚଖେଇ
ଭେଳକି ଲେଗଇ ଦେଲା କାଳିଆ
ଭୁଲିଗଲି ମୋର ଗାଁ ପଡ଼ିଆ
ସରଗ ଦୁଆରେ ବାହା ହେବି ବୋଲି
ମନ ମୋ ବଳିଲା ଅଠର ଥର,
ଘୁଞ୍ଚ ସିଂହ ଦୁଆର·· [୩]

ଏତକ କରୁଣା ଥାଉରେ ନାଥ
ବଡ଼ଦାଣ୍ଡେ ଗାଇ ତୋହର ଗୀତ
ମନଖୋଲି ଗୀତ ଗାଉଛି ମୁହିଁ
ମୋହ ସାଥେ ନାଚ ଥିବୁରେ ତୁହି
ଏ ମାୟା ସଂସାର ଲୋଡାନାହିଁ ମୋର
ଦିନ ଯାଉ ଦେଖି ଶ୍ରୀମୁଖ ତୋର
ଛୁଡ ସିଂହ ଦୁଆର...(୦)
ଭଲ କାଳିଆ କରିଲ ମନ୍ତର;
ଏ ଭଲ କାଳିଆ କରିଲ ମନ୍ତର

## ଭଜନ—୨୭

ପ୍ରଭୁ ତୁମପରି ମୋର
କିଏ ଅଛି ଆପଣାର
ପୋଛି ଦେବ କିଏ ଆଖି ଲୁହଧାର
ମନକଥା ବୁଝି ମୋର...
ଦେଉଅଛି ଦୁଃଖ ଯେତେ-
ମୁଁ କି ପାରୁନାହିଁ ସହି...
ଆଜ କହି ଦିଅ ମୋତେ
ପ୍ରଭୁ କର କାହା ପାଇଁ
ଶୁଣ ହେ ଗୁହାରି ମୋର...
କିଏ ଅଛି ଆପଣାର
ପୋଛି ଦେବ କିଏ ଆଖି ଲୁହଧାର
ମନକଥା ବୁଝି ମୋର ।
ଜାଣିବା ତୁମେ ଯେବେ...
ଜାଣିବାରେ ଦୁଃଖ ନାହିଁ...
ଏକାଥରେ ମାରିଦିଅ ଜାଣି ଜାଣି ମାର କାହିଁ,

କୃଦ୍ଧ ହେ ଠାକୁର ମୋର    କଏ ଅଛୁ ଆପଣାର
ପୋଛି ଦେବ କଏ    ଆଖି ଲୁହଧାର
ମନକଥା ବୁଝି ମୋର ।

## ଭଜନ—୨୭

କରୁଣା ସାଗର ହେ ଡ଼ାକୁ ତୁମକୁ ( ଘୋଷା )
ଦୟାକର ଦୟାକର ପାନଜନକୁ ।୧।

ସମବେତ କଣ୍ଠେ—୨

ଡର କାହାକୁ ଆମର ଭୟ କାହାକୁ,
ଠାକୁର ଅଛନ୍ତି ସବୁ ତଡ଼ିବାହାକୁ ।୨।
ପର ସେବା ହେଉ ଆମ ଜୀବନ ବ୍ରତ,
କାହାମନେ କେବେହେଲେ ନ ହେବ ଦୁଃଖ ।
ପରଦୁଃଖ ଦେଖି ଆମ ଲୁହ ବରଷୁ
ଜଗତ ସୁଖରେ ଆମ ହସାରେ ହସୁ ।

କରୁଣା ସାଗର.........

ସତକର୍ମ ଗଲେ ସତେ ନରକେ ଯିବୁ,
ମିଛ କହିବାର ହେବା ନଦଅ ପ୍ରଭୁ ।
ଦଅ ବୁଦ୍ଧି ଦଅ ଜ୍ଞାନ ଦଅ ବଳକୁ,
ଭକତି ରହୁ ତୋ ପଦେ କାଳ କାଳକୁ ।
କରୁଣା ସାଗର......।।

## କଣାଣ—୨୮

ଯେତେ ଦୁଃଖ ତୁହି ଦେବୁରେ କାଳିଆ
ଯେତେ ହେବୁ ମୋର ଆପଣାର [ଘୋଷା]
କେତେ ଚଳାଇବୁ ପରକର ମୋତେ
ସୁଖେ ଯିବ ପ୍ରା...ଣ...ମୋ...ର । [ ୧ ]

ଆଶା ଦେଇ ତୁମେ ନିରାଶ କରିଛ
ଘୋଡ଼ାଇବ ପଛେ ଚୋର
ହସି ମରେ ଯେତେ କନ୍ଦାଅ ଥିବୁରେ
ସେ ହେବ ଭରସା ମୋର [୨]
ବାଟ ଭୁଲାଅ ତୁ ଅବାଟେ, ଚଲାଇ
କେତେ କରି ସାଜପାର
ଯେତେ ପିନ୍ଧୁଥିବୁ ଫୁଲର ଗଜରା
ଏଇତ ଗରବ ମୋର (୩)

## ଭଜନ—୨୯

ହେଲା କରନା ହେ ନୀଳାଚଳ ନାଥ ଆଉ...୨
ବଳାଇଲୁ ଦୁଃଖ କଲା ତା'ର ମୁଖ...୨
ଛୋ ହରି ଗୁଳକ ଥାଉ ଥାଉ
ହେଲା କରନା ହେ—॥ ଘୋଷା ॥
ମିଳାଇଲୁ ଦେହ ଜଳେ ଲୁଣପରି
ପଳାଇ ଯିବ ଏ ଜୀବ...୨
କଳା ଶ୍ରୀପାଦେ ନୀଳାଦ୍ରି ନନ୍ଦଅ—୨
ଠିକ ଏ ଚୋରେ ଭଜିବ
ଶ୍ଳୋକ ଅଠାହଠା କା'ଠାରୁ ଶିଖିଲୁ
କୁଳବୁଡ଼ା ନନ୍ଦବଳା—୨
ଦୁରୂବଳେ ବଧି କ ଫଳ ପାଇବୁ
ପୁରୁବର ରଥଟଳା ହେଲା...
କୁଳପଟ ପରି କରଣ ଚୋଳବୁ
ଗୋକୁଳ ଆକୁଳ ଯେତେ...୨
ମୋ ବେଳକୁ ଏବେ କଥାକୁ ଘୋଷିବୁ
ମଥା ଦେଇଥିଲ ଟେକା...ହେଲା କରନା...

ନାଜ ହୋଇ ନିଜେ ନହେଲେ ଚନ୍ଦ୍ରଳ
ଚଳନ୍ତ ଯେମା ବଲ୍ଲଭ ।…୨
ବଇଷ୍ଣବ ଘରେ ଘରି ତୃଷା ଜଳେ ।…୨
ଜନ୍ମୁକ୍ତ କର ପଲ୍ଲବ...ହେଲା କରନା… ।

## ଭଜନ—୩୦

କାଳିଆ......କାଳିଆ…
ତୁ ବଜା ବଇଁଶୀ
କାଳିଆ ତୁ ବଜା ବଇଁଶୀ…୨ ॥ ଘୋଷା ।
ଯମୁନା କୂଳରେ କଦମ୍ବ ମୂଳରେ…୨
ବାହୁଥିଲୁ ତୋର ଯେଉଁ ବଇଁଶୀ
କାଳିଆ.........
ବାଜବ ଯେବେ ସେ ମୋହନ ମୂରଲୀ
ନିଳ ଚଳ ଧାମ ଉଠିବ ନାଚ
ନାଚବ ତୋ ସାଥେ ମୋ ମନରାଧିକା
କୁଳ ଲାଜ ଭୁଲ ବିବସ ନଶି,
ମୋ ମନ ବାଣାର ସ୍ୱର ସିନା ତୁରେ—୨
ସବୁ କଥା କହି ତୋତେ ଭରଷି,
କାଳିଆ.........
ଜଗତ ଜୀବନ ଭକତର ମନ;
ତୋ ପଦେ ପ୍ରଣତି ଡାଳୁଛି ମୁହିଁ
ତୁ ଏକା ମୋହର ଜୀବ ଗଣ୍ଠିଧନ
ତୋ ବିନା ଏ ଜୀବ ରହିବ ନାହିଁ,
ଭବ ସାଗରରୁ ପାର ହେଲ ବେଳେ,
ଗାଉଥିବି ତୋର ନାମକୁ ହସିରେ…
କାଳିଆ…

## ଭଜନ—୩୧

ଭଜ ଭଜ ତୋନାମ ଚକାନୟନ ମୋର ଯାଜୀବନ ପ୍ରଭୁ
ବଦନ ନ ଦେଖିଲେ ତୋ କଳାବଦନ ମୋର ସରେନା ଦିନ-୨
ଏହି ଉତ୍କଳ ବାକ ଦେଇଛି ତୋତେ
ମୋହରି ହାଜଲ୍‌ଭ ସବୁ ତୋ ହାତେ
ଗଳାର ମାଳ ମୋର ରକ୍ତ ଶୀ ଧନ
ପର କରିବୁ ନାହିଁ, ତୋତେ ମୋ ପ୍ରାଣ
ମୋର ଜୀବ ଜୀବନ, ଭଜ ଭଜ...
ଧନ ସମ୍ପତ୍ତି ମୋର ହୋଇବ ବସ
ଲୋଡ଼ା ନାହିଁ ତମର ଧନ ଗବାସ...୨
ହାତ ପତେଇ ମାଗି ଖାଇବି ତୋର
ମନ ଖୁସିରେ ମହାପ୍ରସାଦ ଅନ୍ନ
ମୋର ଜୀବ ଜୀବନ...ଭଜ...ଭଜ
ତୋର ଶ୍ରୀପାଦେ ମୋର ଏହି ମିନତି
ବଡ଼ ଦେଉଳ ପଶି ପାଆନ୍ତୁ ବଚି
ଦେଖାଇ ସେହି ରଙ୍ଗ ଅଧର ହସ
ଭକତଙ୍କର କଣି ନେଉଥା ମନ...ଭଜ

## ଭଜନ—୩୨

କାଳିଆ କାଳିଆ, ଏତିକ କରୁଣା ହେଉ...୨
କାଳିଆ କାଳିଆ, ମାଗୁନି କଣ୍ଠ ଏତିକା କରୁଣା ହେଉ...୨
ତୋ ନାମ ତୁଣ୍ଡରେ ଧରି, ପ୍ରାଣ ପଛେ ଉଡ଼ିଯାଉ
କାଳିଆ କାଳିଆ, ମାଗୁନି କଣ୍ଠ ଏତିକ କରୁଣା ହେଉ
ବଡ଼ ଦାଣ୍ଡ ଖେଳ ବୁଲି, ଦେହେ ମୋର ଲାଗୁ ଧୂଳି...୨
କାହିଁତ ପତାକା ନନୁଯାଉ ଦକା
ଏ ଆଖି ପବିତ୍ର ହେଉ...କାଳିଆ

ଦେଉଳ ବେଢ଼ାରେ ଚୋର,
ଧନ କଟିଯାଉ ମୋର···୨

ତୋ ପ୍ରସାଦ ଖାଇ ତୋର
ଗୀତ ଗାଇ ଏ ଦେହ ମୁକତ ହେଉ । କାଳିଆ···

ନରେନ୍ଦ୍ର ତୋ ଚକାଆଖି ମନ ମୋର ଯାଉ ଲଖି···୨

କାନ୍ଦୁଥାଇ ଗଡ଼ି ତୋ ପାଦରେ ପଡ଼ି
ଏତିକି ମୋଠାରେ ହେଉ··

କାଳିଆ କାଳିଆ ମାଗୁନ କିଛି ଏତିକି କରୁଣା ହେଉ

## ଭଜନ—୩୩

ଜଗା ଆସୁଛିରେ ଜଗା ଆସୁଛିରେ ବଡ଼ଦାଣ୍ଡ ଦୁଲୁକାଇ···୨
ରଥ ଚକା ଗଡ଼ି ଗୁଡ଼ି ଆସଇ ଆଗକୁ ମାଡ଼ି···୨
ପାପ ପୁନଅର ହୋଇ,, ଜଗା ଆସୁଛିରେ ବଡ଼ ଦାଣ୍ଡ
କାଳିଆ ଦିଶୁଛି କାଳିଆ ଧନ, ବାଇ ପଦ୍ମ ଫୁଲ ବାନ୍ଧା
ଅଙ୍ଗରୁ ଢ଼ିଲହେଲା ବସନ ଖସିତ ଗଲାଣି ଅଧା
ଘିଅଖିଆ ଦଇତାଙ୍କ ଚରଳ ଏତ ଗଉଡ଼ର ପୁଅ
ଶ୍ରୀଅଙ୍ଗରୁ ଝାଳ ପଡ଼ୁଛି ଗଳ ହୋଇତ ନଈର ସୁଅ
ନାକରୁ ବସଣି ଝୁଲୁଛି ମଜାରେ,
ଅଜାଣି ମଦନ ହୁଅନ୍ତି ବାଇ; ହୋ ହୋ ଜଗା ଆସୁଛିରେ
ଭକତ ଧରିଆ ରଥ ଭଡ଼ ହାତରେ ନଅନ୍ତି ଛଡ଼ି
ସିଂହ ଦ୍ୱାରୁ ଜଗା ଆସିଛି ମାଡ଼ି ବଡ଼ ଦେଉଳକୁ ଛାଡ଼ି
ସତେକି ସୌଭାଗ୍ୟ ହେବ କାଳିଆ
ମୋର ବଡ଼ ଗୋଳା ମନାଉ

ଟେକି ନେବୁ ମୋର ଭୋଗ ଥାଳିଆ ହେବି ମୁଁ ରଥ କାଳିଆ
କାଳି ବାର ଏହ ପ୍ରିତିକ ଜନମି
ଟାଣିବି ରଥ ଲୁହଝରା—ଓ...ଓ...

## ଭଜନ—୩୪

ଜଗବନ୍ଧୁ ହେ...ଗୋସାଇଁ
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଆଶ୍ରେ ନାହିଁ
ସାତଶ ପଚୁଶ କୋଶ ଗୃଜ ନ ପାରଇ
ମୋର ଯିବାଯାଏ ନନ୍ଦଘୋଷେ ଥିବ ରହି । ୧ ।
ରଥ ଗୃଢପାଖେ ଝରେ ମୁକୁତାର ଝରା
ଝଲମଲ ଦିଶୁଥାଏ ପ୍ରଭୁ ଚକାଡ଼ୋଳା । ୨ ।
ବାଇଶି ପାବଚ୍ଛ ତଳେ ବିକାହୁଏ ଭାତ
ଦର୍ଶନ ଦେଖିକା ଥାଉ କୈବଲ୍ୟ ମୁକତ ।୩।
ଆଗ ଚଳେ ବଳଭଦ୍ର ପଛେ ସୁଭଦ୍ରା ମୂର୍ତ୍ତିରେ
ଆସୁଛି କାଳିଆ ପଛେ ଗହଳ ଲଗାଇରେ ।୪।
କହେ ସାଲବେଗ ହୀନ ଜାତିରେ ଯବନ
ଏହି ମତେ ଆଜ୍ଞା ଦେବୁ ଶୀର ଯିବ ବୃନ୍ଦାବନ ।୫।
କଣ୍ଠ—ଭିକାରୀବଳ

## ଭଜନ—୩୫

ଆସିଥିଲି କାଳିଆ ତୋ ଦରଶନ ପାଇଁରେ
ତୋତେ ଛାଡ଼ି ଯିବାକୁ ମୋ ମନ ବଳୁ ନାହିଁରେ । ପଦ ।
ସାରା ଭୁବନର କାନ୍ତି ଦେଖିଲି ତୋ ରୂପରେ···
ସାରା ଜୀବନର ଶାନ୍ତି ଲଭିଲି ତୋ ମନ୍ଦିରେ···୨
ବିତିଯାଉ ଏ ଜୀବନ ଓ···ଓ···ଓ
ତୋ ବଦନ ଚାହିଁରେ·· ତୋତେ ଛାଡ଼ି ଯିବାକୁ···
ଥକା ନେତ୍ର ଚକା ଆଖି ଧାଇଁନି ବ ମୋହରେ···୨
କରିଦେ ଭିକାରୀ ମୋତେ ତୋ ଦେଉଳ ଦୁଆରେ···୨
ଆନନ୍ଦେ ହେବି ମଗନ ତୋର ଗୀତ ଗାଇରେ—
କଣ୍ଠ—ସୁବାସ ଦାସ

## ଭଜନ—୩୭

ନୀଳଚକ୍ରେ ବାନା ନାଳିଆ ବନ୍ଧୁ ଦେଖ୍ ତାକୁ
ଦେଉଳେ ବସିଛି କାଳିଆ ବନ୍ଧୁ ଦେଖ୍ ତାକୁ
ବାଇଶି ପାହାଚ ଖସଡ଼ା ବନ୍ଧୁ ଚଢ଼ ତାକୁ—୨ଥର
ଆନନ୍ଦ ବଜାର ଅଭଡ଼ା ବନ୍ଧୁ ଭୁଞ୍ଜ ତାକୁ [ ଘୋଷା ]
ଭକତରେ ଭରି ଅନ୍ତର ବନ୍ଧୁ ପୂଜ ତାକୁ
କରିଦେବ ଚଣ୍ଡାର ବନ୍ଧୁ ମାନ ତାକୁ
କରିଦେବ ତତେ ମନ୍ତ୍ର ବନ୍ଧୁ ଜପ ତାକୁ
ସଂସାରୁ କରିବ ଉଦ୍ଧାର ବନ୍ଧୁ ଡାକେ (ଘୋଷା)
ନୀଳଚକ୍ର ବାନା ନାଳିଆ—
ଆଉଜି ଗରୁଡ ଖମ୍ବରେ ବନ୍ଧୁ ଧର ତାକୁ
ଘିଅର ବଳତା ଆଗରେ ବନ୍ଧୁ ଜାଳେ ତାକୁ
ଘଣ୍ଟ ମରଦଳ କାହାଳୀ ବନ୍ଧୁ ଶୁଣ ତାକୁ
ହରିବୋଲ ହରିବୋଲକୁ ବନ୍ଧୁ ଘୋଷ ତାକୁ [ ଘୋଷା ]
ଓ...ନୀଳଚକ୍ରେ ବାନା ନାଳିଆ ବନ୍ଧୁ ଦେଖ୍ ତାକୁ
ନରିମାଳି କରି ସମ୍ପତ୍ତି ବନ୍ଧୁ ରଖ ତାକୁ
ଜାଗସୁତି ମୋହ ମାୟାକୁ ବନ୍ଧୁ ବୋଲ ତାକୁ
ମନଖୋଲି ମନ କଥାଟି ବନ୍ଧୁ କହ ତାକୁ
ବଇକୁଣ୍ଠେ ନେଇ ଥୋଇବ ବନ୍ଧୁ ମାନେ ତାକୁ
ନୀଳଚକ୍ରେ ବାନା ନାଳିଆ ବନ୍ଧୁ ଦେଖ୍ ତାକୁ [ ୨ ଥର ]

କଣ୍ଠ—ପ୍ରଫୁଲ୍ଲ କର

## ଗୀତ — ୩୭

କି ବର୍ଣ୍ଣିବ ଧନ...ଶ୍ରୀକ୍ଷେତ୍ର ମହିମା ମର୍ତ୍ତ୍ୟପାଇଁ ପୁଣ୍ୟ ଏହି
ସକଳ କରମ ସୁଫଳ ହୁଅଇ ଏଠି ପୁଣ୍ୟର ତୁଳନା ନାହିଁ ।
ଶୋଇଥିଲେ ଏଠି ଦଣ୍ଡ ପଣାମ ବୁଝାଇ
ଆମିଷ ଖାଇଲେ ହବଶ ଅନ୍ନପେଯ, ବୁଝଇ ।
ଗାଳି ଶୁଣୁଥିଲେ ଆଶୀର୍ବାଦ ଯେ ବୁଝଇ......

ଆରେ ଶ୍ରୀକ୍ଷେତ୍ରରେ ଗୋଡ଼ ଦେଇ ଦେଇ...
ଘର ବଣ୍ଟିଲ ହେଲାରେ ଧନ
କୋଉଠି ଥୋଇବ ତାକୁ କୋଉଠି ଥୋଇବ ।
ବଡ଼ ଦେଉଳକୁ ଦେଖୁ ଦେଖୁ ମୋର ଭଣ୍ଡାର
ହେଲାଣି ପୂରରେ ଧନ
କୋଉଠି ଥୋଇବ ତାକୁ କୋଉଠି ଥୋଇବ
ଭାବଥିଲି ଯାଇଁ ଶ୍ରୀକ୍ଷେତ୍ରେ ଶୋଇବ...ମଖମଲି ଶେଯଧାର ।
ଶୋଇ ଦେଲା ମୋତେ ଶରଧା ବାଲିରେ
ବଇକୁଣ୍ଠ ନୁହେଁ ସଗରେ ଧନ ବୈକୁଣ୍ଠ ନୁହଁ ସଗ,
ବହୁଛି ମଳୟ ନନ୍ଦନେ ମୋର ଆଲଟ କରିବା ପାଇଁ
ନରେନ୍ଦ୍ରର ଜଳ ରଖିଛି ନିର୍ମଳ ମୋ ଦେହ ମାଜଣା
ପାଇଁରେ ଧନ ମୋ ଦେହ ମାଜଣା ପାଇଁ...
~~ପାତିଏ ଚୌକି~~ ଝଙ୍କା ହୋଇ ଅଛି ପେଟ ଭୁଖଣ୍ଡିକ ପାଇଁରେ
ଧନ କୋଉଠି ଥୋଇବ ତାକୁ, କୋଉଠି ଥୋଇବ
ପାଠ ଫିର ଦ୍ୱାରେ ନାହିଁରେ ଆଦର ଶ୍ରୀକ୍ଷେତ୍ରର ସାର
ଦସୁଣା ଟଙ୍କରେ ଅପାର କି ହେବ ମୋନ୍ତରେ ଧନ
ଭଜନ ସଂକୀର୍ତ୍ତନ ଉଚ୍ଛୁଳ ପଡ଼ୁଛି ମୋ କାନ ଶୁଣିବା ପାଇଁ
ଭଳ ଭଳି ଭେଶ ହେଉଛି କାଳିଆ ମୋ ନେଶ
ଦେଖିବା ପାଇଁରେ ଧନ
ମାଟିବା ଅଟରୁ ଅଜାଡ଼ି ଦେଉଛି ଦେଲା ଦଅଁ ମୋ କାଳିଆ ଧନ
କୋଉଠି ଥୋଇବ ( ଘୋଷା )

କଣ୍ଠ—ପ୍ରଫୁଲ୍ଲ କର

## ଗୀତ—୩୮

ହଳଦ ମୁଖି ସୁମୁଖି ଧଳା ବଳିଆ—୨
ରଜା ହୋଇ ବସିଛି ମୋ ଜଗା କାଳିଆ । ୧ ।

ମହିମା ଶୁଣିବା ଡ଼ାକ, ଘ୍ରମୁରେ ପଡ଼ୁଛି ଦେଖ
ବଳଆର ଭୂଜ ରଖ, ରଖହେ କଳା ଶ୍ରୀମୁଖ
ବୋଧ ପଦ ପ୍ରଭୁ ଥାଉ ପଦ ସେ ବଝଦ ରହୁ
କରୁଣା ଭଣ୍ଡାରୁ ତୋର ଅଣାଟିଏ ଆଜ୍ଞା ହେଉ
ଆଉ ନୟନେ ଅନାଁ ଚକା ଡ଼ୋଳଆ-୧
ରଜା ହୋଇ ବସିଛୁ ମୋ ଜଗା କାଳିଆ । ୨ ।
ବାର ମାସେ ତେର ଜାତ, ଲ ଟିଛୁ ଲୀଳା ଶ୍ରୀକ୍ଷେତ୍ର,
ଦାତା ପଣେ ଜଗନ୍ନାଥ, ନାମ ଜଗତେ ବଖ୍ୟାତ
ନ ମାଗଇ ଗତି ମୁକ୍ତି କଅବା ଭୂଜ ବଭୁତି
ଶ୍ରୀରଙ୍ଗା ଚରଣ ତଳେ ସଦା ରହୁ ମୋର ମତି
ତୋର ନାମ ଗାଉ ଗାଉ ଯାଉ କୂଳଆ
ରଜା ହୋଇ ବସିଛୁ ମୋ ଜଗା କାଳଆ । ୩ ।
କ୍ରୁ — ଶାନ୍ତିଲତା ଦାଶିକ

## ଗୀତ – ୩୯

ବଳବନ୍ତ ବାହୁ ମୋ ଜଗା କାଳଆରେ···
ଆଉ କେ ଅଛୁ ସାମନ୍ତ ତେ ଭଳିଆରେ...ଘୋଷା ।
ଭାଇ ଭଉଣୀ ମିଶି ଶ୍ରୀକ୍ଷେତ୍ରେ ଅଛ ବସି
ଦେଖଲେ ଜୁଡ଼ୁଛି ତୋ ବାନା ନାଳଆରେ
ବଳବନ୍ତ ବାହୁ ମୋ ଜଗକାଳଆ··· । ୧ ।
ଜୟ ହେ ଜଗନ୍ନାଥ, ମଧ୍ୟେ ସୁଭଦ୍ରା ମାତ
ଡ଼ାହାଣେ ବସିଛୁ ତୋ ଭାଇ ବଳିଆରେ
ବଳବନ୍ତ······ । ୨ ।
ଧନ୍ୟ ସେ ବଡ଼ଦାଣ୍ଡେ, ଜନେ ହୁଅନ୍ତି ଠୁଣ୍ଡ
ବ୍ରାହ୍ମଣଠାରୁ ଚଣ୍ଡାଳ ସବେ ହୁଅନ୍ତ ଠୁଣ୍ଡ

ତୋ ନାମକୁ ଗାଇ ଏ ଭକ୍ତ କରେ ମାଳଆରେ
ବଳବନ୍ତ ବାହୁ ମୋ ଜଗା କାଳିଆରେ ..। ୩ ।

କଣ୍ଠ—ଶାନ୍ତିଲତା ବାରିକ

## ଗୀତ—୪୦

ମୁଁ ଆସିଛି ଦେଖି ମୋ କଳା ବଦନକୁ
କଳା ବଦନକୁ ମୋ ସୁନାର ଧନକୁ
ଆସିଛି ଦେଖି ମୋ କଳା ।...

ଅନ୍ଧ ଲଉଡ଼ି ମୋ ...ଗଳାର ମାଳି
ତୋ ବିନା କିଏ ମୋର ଅଛିରେ
ତୋର ହାତଟେକା ଖୁଦ କଣିକାଏ-୨
ମାଗୁଛି ମୁଁ କାଳ କାଳକୁ
ଆସିଛି ଦେଖି...। ୧ ।

ପରାଣ ମିତ ମୋ...ତୋହର ଗୀତ
ଯୁଗ ଯୁଗ ଧରି ଗାଇବି
ଯୋଗୀଟିଏ ହୋଇ ବଡ଼ ଦାଣ୍ଡେ-୨
ସୁମରିବି ତୋର ନାମକୁ
ଆସିଛି ଦେଖି... । ୨ ।

ଦୁଃଖ ପାଶୋରରେ କହିବି ମୋ ଦୁଃଖ
କେତେ ବାଟ ଧାଇଁ ଆସିଛି—
ନୟନ ହେଲେ ମୁଁ ଫେରିବିନି ଆଉ
ଶ୍ୱାସ ଦେବି ଏ ଜୀବନକୁ
ଆସିଛି ଦେଖି — । ୩ ।

କଣ୍ଠ—ଶାନ୍ତିଲତା ବାରିକ

## ଗୀତ – ୪୧

ମେଘ ମାଳାକୁ ନନ୍ଦେ କଳାକୁ
ଦୃଢ଼ ବାରେ ମନ ତଳା ଡୋଳାକୁ
ସେ ଭକତ ରତେ ସରଗଲେ ଭକ୍ତେ
ଆଶ୍ରେ କର ଯାର ନାମ ଭେଳାକୁ [ ଘୋଷା ]
ସଦାଶିବ ହର ହୋଇଲେ ଅମର
କୋଳେ ଧରିଛନ୍ତି ଗିରି ବାଳାକୁ
ଗୁନ୍ଥି ମାଳାକୁ ପିନ୍ଧି ଗଳାକୁ
ନାମ ଜପୁଛନ୍ତି କଳା ଧଳାକୁ--୧
ସତ୍ୟରେ ଶ୍ରୀପତି ସମୁଦ୍ରକୁମନ୍ଥି
ତହିଁରୁ ଜାତ କଲେ କମଳାକୁ
ଦେବାସୁର ଯେତେ ଅମୃତ ବିବାଦେ
ମୋହିନୀ ହୋଇଲେ ଦେବ ଶାନ୍ତାକୁ
ଗନ୍ଧ ଗଳାକୁ ତେଜ ହେଳାକୁ
ମୋହ କଲେ ମହାଦେବ ଭୋଳାକୁ
ହେତ୍ରୟା ଯୁଗରେ କଳ୍ପବଟ ମୂଳେ
ମାଡ଼ି ବସିଛନ୍ତି ଲକ୍ଷେ ଶିଳାକୁ
ବିବାକଲେ ଅନ୍ନ ଦେଲେ ଦାସିଧର୍ମ
କେହି ନ ଖୋଜଇ କାହା ଧର୍ମକୁ
ଦେଖ କଳାକୁ ମୁକ୍ତି ଶାଳାକୁ
ଭବେ ହୃଦାନନ୍ଦ କଣ୍ଠ ମାଳାକୁ
ମେଘମାଳାକୁ । ୩ ।
କଣ୍ଠ—ଅକ୍ଷୟ ମହାନ୍ତି

## ଗୀତ—୪୨

ପଚାରିଲେ ରାଧିକାକୁ ହସେ ନନ୍ଦବାଳା
ତୁମେ କାହିଁ ଗୋରି ହେଲ ମୁଁ କାହିଁକି କଳା

ପଚାରିଲେ ରାଧିକାଙ୍କୁ [୧]

ସଖି କହନ୍ତି ରାଧା ତୁମେ କି ଜାଣନା
କଳା ଚୋର ଏଇ ମନ ଦେହ ଗୋରା ସିନା ।
ତୁମ ମନ ଗଢ଼ା ଆହା ଷାଠିଏ କଳାରେ
ଦେହ ରଙ୍ଗ କଳା ସିନା ଗୋରା ଅନ୍ତରେ
ସେ କଳାରୁ ଏକ କଳା ଅଟେ ପ୍ରୀତିକଳା
ସେ ପ୍ରୀତିରେ ମୋହେ ମନ ଯାଇ ଗୋପବାଳା
ପଚାରିଲେ ରାଧିକାଙ୍କୁ । ୨ ।

ଆଖି ପିଏ ରଙ୍ଗ ଖୋଜେ      ମନ ଖୋଜେ ମନ
ମନର ଆଖିରେ ମୁଁ ଯେ      ଦେଖୁଛି ସପନ
ବଇଁଶି ଗାଉଛି ତୁମ ଖାଲି ରାଧା ନାମ
ସେ ସ୍ୱରରେ ଲୁହିଛି କି କଳା ଗୋରା ରଙ୍ଗ
ଲୋକେ ବୋଲି ଅପବାଦ ଦେଇ କଲେ କଳା
ତୁମ ରଙ୍ଗେ ଦେଲି କଳା ଆହେ ନନ୍ଦବଳା
ପଚାରିଲେ ରାଧିକାଙ୍କୁ ଦିନେ ନନ୍ଦବଳା
ତୁମେ କାହିଁ ଗୋରା ହେଲ ମୁଁ କାହିଁକି କଳା
ପଚାରିଲେ······ । ୩ ।

କଣ୍ଠ —ଭିକାରି ବଳ

## ଗୀତ—୪୩

ଜଗନ୍ନାଥିଆର ଶ୍ରୀମହାପ୍ରସାଦ ପାଗଳ କଲାରେ ଭାଇ
ସଚ୍ଚିଦାନନ୍ଦ ତୋର ହୋଇ ଆଗଭର ଶ୍ରୀକ୍ଷେତ୍ରେ ଆସିଲି ଧାଇଁ
ମୋତେ କାଳିଆ କଲାରେ ଭାଇ । ୧ ।
ଦେଖିଲି ବସିଛି ଚକାଆଖିଆ
ଯେତେ ଦେଖୁଥିଲେ ଲାଗୁଛି ନୂଆ
ଆଖି ଗଲା ଲାଖି ଆଖିରେ ତାର
ଭୁଲି ଗଲି ମୋର ଘର ସଂସାର

ରେକର୍ଡ଼ ଭକ୍ତ ସଙ୍ଗୀତ

ମନରେ ଆଉ ତାର ସେବାରେ ଖଟନ୍ତି........୨
ଜଗତ ଜଞ୍ଜାଳ ଦୂରରେ ଥୋଇ
ମୋତେ କାଳିଆ କଲରେ ବାଇ । ୨ ।
ଆନନ୍ଦ ବଜାରେ ହାଜର ହେଲି
ମଜାରେ ଖାଇଲି ଅଭଡ଼ା ଡାଲି
ଖାଇସାରି ମୁଣ୍ଡେ ପୋଛିଲି ହାତ
ସିଂହ ଦ୍ୱାରେ ଯାଇ ଗାଇଲି ଗୀତ
ସୁଖର ଦୁଃଖର ସାଥି ସିଏ ମୋର.........୨
ତା ବିନା ମୋହର କେହିତ ନାହିଁ
ମୋତେ କାଳିଆରେ ବାଇ—୩
ଜଗନ୍ନାଥିଆର ଶ୍ରୀମହାପ୍ରସାଦ ପାଗଳ କଲାରେ ସଇ
ସନ୍ନ୍ୟାସୀ ଚୋର ହୋଇ ଆଗଭର ଶ୍ରୀକ୍ଷେତ୍ରେ ଆସିଲି ଧାଇଁ
ମୋତେ କାଳିଆ କଲାରେ ବାଇ

କୃଷ୍ଣ - ଭିକାରି ବଳ

## ଗୀତ— ୪୪

ହରି ହେ । ଗରିବ ଡାକ କାନେ ବାଜେନା
କାହିଁକି ଜଣା ହେବ କରୁଣା
ବଡ଼ ବଡ଼ କଥା ଯେତେ ତୁମ ନାମେ ଶୁଣିଛି ମୁଁ
ତୁମ ନାମେ ଶୁଣିଛି ।
ତୁମ ପାଦ ଆଶ୍ରା କରି ସବୁ ସତ ମଣିଛି ମୁଁ—
ସବୁ ସତ ମଣିଛି ।
ଘୋର ବନେ ମୃଗଣୀ ଡାକିଲା ଚକ୍ରପାଣି
ନକ୍ର ନାଶି ଗଜକୁ ରଖିଛ ବେଳ ଜାଣି
ଏବେ କାହିଁ ପୂରୁବ କୀର୍ତ୍ତି ଗାରିମା
କାହିଁକି ଜଣା ହେଲା କରୁଣା ।୧।
ରଖ ବା ନରଖ ମୋତେ ଗଲି ତୁମ ଶରଣ ହେ
ଗଲି ତୁମ ଶରଣ

ଆନଗତ ନାହିଁ ମୋର ପ୍ରଭୁ ଚକା ନୟନ ହେ—
ପ୍ରଭୁ ଚକା ନୟନ
ପତିତପାବନ ବାନା ଉଡ଼ାଉଛ ମିଛେ ସିନା!
ଦୀନଜନ ଗୁହାରିକି କେବେତ ନକଲ ଶୋନ!
ତୁମେ ବଜାଇବ କି ନିନ୍ଦା ବାଜଣା!
କାହିଁକି ଊଣା ହେଲା କରୁଣା
ହରି ହେ...ଗରିବ ଡାକ କାନେ ବାଜେନା । ୨

କଣ୍ଠ—ଭିକାରୀ ବଳ

## ଗୀତ—୪୫

କି ଲାଗି ଡ଼ାକିବି ମହାବାହୁ ବୋଲି
ଦେଖିଲିତ ନାହିଁ ହାତ
ହେ...କିଲାଗି ଡ଼ାକିବି.....
ମିଛେ ସିନା ଚକାଡୋଳା ବୋଲାଉଛ
ଭଣ୍ଡି ବାକୁ ଜଗନ୍ନାଥ ହେ...କି ଲାଗି ଡାକିବି... ।
ବୋଲାଉଛ ମିଛେ ଭକତ ବତ୍ସଳ
ତୁମ କପଟରେ ନାହିଁ ଅନୁକୂଳ
ମନ୍ଦ ଦଶଆରେ ଘସିଯାଏ ସିଏ
ତାହାଙ୍କୁ ଛଡ଼ାଇ କାତର ହେ...ଏ...
କିଲାଗି ଡ଼ାକିବି.....। ୨ ।
ଏହି ପରା ତୁମ ମହତ ପଣିଆ
ଦୀନଜନ ନାଥ ବୋଲି ପଡ଼େ ନାଁ
ବଡ ଲୋକ କ୍ଷୀର ସର ଖୁଆଇବ...
ରଙ୍କି ମୁଖୁ କାଡ଼ି ଖାଅ ହେ.....
କିଲାଗି ଡ଼ାକିବି ମହାବାହୁ ବୋଲି...
ଦେଖିଲିତ ନାହିଁ ହାତ ହେ କିଲାଗି..... ।

କଣ୍ଠ—ଭିକାରୀ ବଳ

---

ହରିବନ୍ଧୁ ସାହୁଙ୍କ ଦ୍ୱାରା ବ୍ରହ୍ମପୁର,ସନ୍ନ୍ୟାସୀ ପ୍ରେସ୍‌ରେ ମୁଦ୍ରିତ